# ମତ୍ସ୍ୟସୁତାର ପ୍ରୀତିକଥା (ଭାଗ) -୧



ଜାଣେନା କି ହେଲା ମୋର ଅନ୍ତର ଗହ୍ୱରେ;
ନିତି ଏଠି ଆସେ ମୁହିଁ କାହା ଅଭିସାରେ !
ମାତ୍ର ନିମିଷେ ଦର୍ଶନ:
ନିଷ୍ପ୍ରାଣ ଚେତସେ ସର୍ଜେ ସ୍ୱଳ୍ପ ଆଶ୍ୱାସନ ||          -୧

ଜଳଧି-ମଉଳି ବାଳା ବିଳାସ-ବାସିନୀ
ସଲିଳ-ସମ୍ଭୂତା ଜଳଧର-ଅହ୍ଲାଦିନୀ
ମନେ ଉଦ୍‌ବେଳ ଉଚ୍ଛ୍ୱାସ:
ସ୍ଥଳଚରେ ଘାରେ ପ୍ରେମାଳାପ-ଅଭିଳାଷ ||          -୨

ମରୁତ-ମାରିତ ଏକ, ଆନେ ରିଣ ଜଳ;
ଏକ ଆନେ ଅଦର୍ଶନେ ନୟନ ଉଚ୍ଛଳ;
ଏ କି ଅଦୃଷ୍ଟ-ବିଚାର ?
ରଭସ-ପୀୟୂଷ ମିଶା ଚିର ଅଭିସାର !!          -୩

ଲଲାଟେନ୍ଦୁ କବି ୨୦୧୭୦୧୨୨-୨୦୩୦

# ମତ୍ସ୍ୟସୁତାର ପ୍ରୀତିକଥା (ଭାଗ-୨)



ଏ କି ଦେଖେ ଏ ନୟନ କାହିଁ କେତେ ଦୂରେ;
ମୋ ପ୍ରେମ-ପ୍ରାର୍ଥିତ ସିନ୍ଧୁ-ଅନ୍ତଃପୁର-ଦ୍ୱାରେ !
ଏ କି ଅତ୍ୟୟ ରକ୍ତକ ?
ଅବା ସନ୍ମତ୍ତ ପ୍ରମତ୍ତ ଦୁର୍ବାର ପ୍ରେମିକ ? -୪
କି ଲାଗି ଦେଲି ମୋ  ଜାତ-ବାସ-ଭୂମି ବିନ୍ଦୁ ?
ପରମ ନିର୍ବୋଧ ଅନାୟାସେ ଲଙ୍ଘେ ସିନ୍ଧୁ;
ଏ ତ ପ୍ରସକ୍ତ ବଲ୍ଲଭ;
ଏ କି ଜାଣେ ରାଜଧର୍ମ ଦଣ୍ଡ ଉପଦ୍ରବ ? -୫

ସିନ୍ଧୁପତି ଅହ୍ଲାଦିତା ମୁଁ କୁଳନନ୍ଦିନୀ;
ଅଜ୍ଞାତବାସେ କି ଭାବେ ରଖିବି କେଜାଣି ?
ଏବେ ବିଷମ ପ୍ରସ୍ଥିତି;
ପର ସୁଖ-ଯାତ୍ରା  ପୂର୍ଣ୍ଣମସୀ ମଧରାତି || -୬

ଲଳାଟେନ୍ଦୁ କବି ୨୦୧୭୦୧୨୫- ୧୧୦୩
ହରିଶରଣମ୍

# ମତ୍ସ୍ୟସୁତାର ପ୍ରୀତିକଥା (ଭାଗ-୩)



ଆଉ ଦୁଇ ଘଡ଼ି କାଟି ଦିଅ ହେ ମଉନେ;
ପ୍ରଘଟିବ ସତ୍ୟ ଜଳେ ସମାନ୍ୟ ସ୍ପନ୍ଦନେ |
ଯେବେ ପଡ଼ି ଯିବା ଧରା
ତୁମକୁ ନିଧନ ଦଣ୍ଡ, ମୋତେ ଚିର କାରା ||-୭

ଦ୍ୱାଦଶ ଦିବସ ଶେଷ ନିରେଖି ବଦନ;
ଚକ୍ଷୁସେ କୋଟିସଃ ଭାଷା ରସନ ମଉନ;
ପ୍ରୀତି ସାନ୍ନିଧ୍ୟେ ବାଧିତ:
ଅକଳ ଜଳଧି ଜଳେ ଶଙ୍କଳୀ ତୃଷିତ ||-୮

ନିକଟୁ ନିକଟତମ, ଦୁହେଁ ଭାଷାହୀନ
ଷୋଡ଼ଶ ଦିବସ ଶେଷ ଏ କି ବିଡ଼ମ୍ବନ;
ଏ କି ଭୀଷଣ ପରୀକ୍ଷା;
ଆଶ୍ଳେଷେ ବିଶ୍ଳେଷ ଜ୍ୱାଳା ତୀବ୍ର ବହ୍ନି-ଶିଖା !-୯

ଏ ଜୀବନ ଶେଷ ଦେଖା; ଚାହିଁ ରହ ମୋତେ;
ଘେନିବ ବିଦାୟ ଅଦ୍ୟ ମଧ୍ୟରାତ୍ର ଗତେ;
ଦମ୍ଭ ଧରି ଯାଅ ଫେରି;
କାଟିବି ମୁଁ ବାକି ଜୀବ ଢାଳି ଅଶ୍ରୁବାରି ||-୧୦
ଲଲାଟେନ୍ଦୁ କବି          ୨୦୧୭୦୧୨୯-୧୧୫୬